'ଭେଟର ଭାବନା' ପୁସ୍ତକଟି ଲେଖିସାରିବା ପରେ ମୁଦ୍ରଣ ନିମନ୍ତେ ସମ୍ବଳର ଏକାନ୍ତ ଅଭାବ ହେତୁ ନିରାଶ ହେବାକୁ ପଡ଼ିଥିଲା । ପରିଶେଷରେ ଖୋର୍ଦ୍ଧା ପଞ୍ଚାୟତ ସମିତିର ଭାଇସ୍ ଚେୟାରମ୍ୟାନ ପରୋପକାରୀ ସାହିତ୍ୟାନୁରାଗୀ ଶ୍ରୀମାନ୍ ପୂର୍ଣ୍ଣଚନ୍ଦ୍ର ବାହିପେନାଂ ସ୍ୱତଃପ୍ରବୃତ୍ତ ହୋଇ ମୁଦ୍ରଣ କାର୍ଯ୍ୟ ନିମନ୍ତେ ଏକଶତ ଟଙ୍କା ଦାନ କରିଥିବାରୁ ଲେଖକ ତାଙ୍କ ନିକଟରେ ଆନ୍ତରିକ କୃତଜ୍ଞତା ଜ୍ଞାପନ କରୁଛି ।

ନମୋ ନାରାୟଣାୟ



ଶ୍ରଦ୍ଧେୟ ନାରାୟଣ ମିଶ୍ରଙ୍କ 'ଶ୍ୱେଟର ଭାବନା' ସମସାମୟିକ ରାଜନୈତିକ ପରିସ୍ଥିତିର ଏକ ସଚ୍ଚୋଟ ସମାଲୋଚନା। ଦେଶପାଇଁ କବିପ୍ରାଣର ସମର୍ପିତା ଏଥିରେ ପ୍ରକାଶ ପାଇଛି। ଆଜି ଦେଶରେ ନିର୍ମଳ ରାଜନୀତି ନାଇ। ନେତା ନାହାନ୍ତି। ଚାରିଆଡ଼େ ଲାଂଚ, ମିଛ, ଅସତ୍ୟର ଖେଳ ଲାଗିଛି। ଏଇକଥା କବିଙ୍କୁ ଭାରି ବାଧୁଛି। କେବଳ ଓଡ଼ିଶା କଥା ବାହାର କରି ମିଶ୍ରେ ନୀରବ ରହି ନାହାନ୍ତି। ଭାରତର କେତେକ ସମସ୍ୟା ଉପରେ ସେ ଆଖି ପକେଇଛନ୍ତି। [illegible] ସ୍ୱାପରଭାବରେ ଚିନ୍ତା କରୁଥିବା [illegible] ଏହିପରି ଅନେକ ପୁସ୍ତକ ପ୍ରକାଶିତ ହେବା [illegible] ଏ ବହିର ବହୁଳ ପ୍ରସାର ଚାହୁଁଛି।

ନୀଳକଣ୍ଠ ଦାସ

୧୪।୭।୭୪

ଶ୍ରୀଯୁକ୍ତ ନାରାୟଣ ମିଶ୍ର ଜଣେ ଜାତୀୟ କବି । ମୁଁ ତାଙ୍କ ଲିଖିତ ଏକାଧିକ କବିତା ବହି ପଢ଼ିବାର ସୁଯୋଗ ପାଇଛି । ତାଙ୍କ ହୃଦୟରେ ଦେଶ-ପ୍ରେମର ବହ୍ନି ପ୍ରଜ୍ଜ୍ୱଳିତ । ସେ ଅନ୍ୟାୟ, ଅତ୍ୟାଚାର, ଦୁର୍ନୀତିର ଆଦର ତୀବ୍ର ବିରୋଧୀ । ଅନ୍ୟମାନେ କଥାରେ ଯାହା କହି ନିଜ ମତକୁ ପବନରେ ମିଶାଇ ଦିଅନ୍ତି, ସେ ସୁଖପାଠ୍ୟ କବିତା ମାଧ୍ୟମରେ ତାକୁ ଜନସାଧାରଣଙ୍କ ମଧ୍ୟରେ ବିକିରଣ କରନ୍ତି । ସେ ଦୃଷ୍ଟିରୁ ତାଙ୍କ କବିତାର ମୂଲ୍ୟ ଅଛି । ସେଥିରେ ବର୍ଣ୍ଣିତ ଚିନ୍ତାଧାରା ଚିରନ୍ତନ ; ପ୍ରଚଳିତ ସମାଜ ଓ ଶାସନରେ ତାହାର ବିଲୟ ନାହିଁ ।

ତାଙ୍କ 'ଭୋଟର ଭାବନା' ଏହିପରି କେତେଗୋଟି ଦେଶପ୍ରେମୀ ଭାବନାର ଅଭିବ୍ୟକ୍ତି । ଏଥିରେ ସେ ସରଳ ଭାଷାରେ ଆଧୁନିକ ଭାରତର ଗଣତାନ୍ତ୍ରିକ ସ୍ଥିତି, ବୈଦେଶିକ ନୀତି ଓ ଶାସନ ସମସ୍ୟା ବର୍ଣ୍ଣନା କରିଛନ୍ତି । ଏହା ନିଶ୍ଚୟ ପାଠକ-ମାନଙ୍କୁ ଅନୁପ୍ରାଣିତ କରିବ ।

ସାମାଜିକଶିକ୍ଷା ପାଇଁ ଏଭଳି ପୁସ୍ତିକାର ମୂଲ୍ୟ ଅତ୍ୟଧିକ । ତାଙ୍କ ସବଳ ଲେଖନୀରୁ ଆହୁରି ବେଶୀ ଆଶା କରାଯାଏ । ମୁଁ ତାଙ୍କୁ ଅଭିନନ୍ଦନ ଜଣାଉଛି ।

**ଶ୍ରୀରାମଚନ୍ଦ୍ର ଦାଶ**

୨୬ । ୮ । ୭୪

# ଭୋଟର-ଭାବନା

ଦେଶସେବୀ ମାନ୍ୟବର ସଚ୍ଚରିତ୍ର ସଜ୍ଜନ
ପ୍ରତିନିଧିସହ ଯେତେ ମଣ୍ଡଳୀ ସଭାସଦ ।
ଭୋଟରର ନମସ୍କାର ନିଅନ୍ତୁ ସଙ୍ଗରେ
ଶୀଘ୍ରମୁ ଶ୍ରୀମୁଖରେ ଯୋଡ଼ି- ହାତେ କଣ! କରେ ।
ମନକର୍ଣ୍ଣ ଦେଇ ଶୁଣ ସେ କଥା ନିଶ୍ଚଳେ
କପଟ ସମ୍ମୁଳ ହୁଏ ଉପଳ୍କ ବକତାଳେ ।
ହୋଇଛୁ ସ୍ୱାଧୀନ ଦେଶ କରୁଛ ଶାସନ
ଦେଖ ତୁମ୍ଭ ଆମ୍ଭ ମଧ୍ୟେ କେତେ ବ୍ୟବଧାନ !
ବନ ମଧ୍ୟେ ପାଞ୍ଚ ସାତ ସପର ଭିତର
ଝାଡ଼ୁଛ ବକ୍ତୃତାମାଳା ଶୁଭୁଛି କର୍ଣ୍ଣରେ ।
ସର୍ବଦା କହିଲ ତୁମ୍ଭେ ଶୁଣୁଅଛୁ ଆମ୍ଭେ
ଶୁଣ ଥରେ ଆମ୍ଭ କଥା ବସି ରହି ଦମ୍ଭେ ।
ମୋ ବଦଳେ ପ୍ରତିନିଧି ତୁମ୍ଭେତ ମୋହର
ଭାବବେ ଏ ସବୁ କଥା- ଗୁଡ଼ାକ ନଜର ।
ଭୋଟଦେବା ପରଠାରୁ ଶୁଣୁଛି ଦେଖୁଛି
ମୋ ଭୋଟର କାମତ ପଦ୍ମର ବୁଝୁଛି ।
ଏଥିପାଇଁ ନ ରଗିବ ମୋର ଦେଶଭକ୍ତ
ରହୁଛି ସର୍ବଦା ତବ ପାଦେଶ ଅନୁରକ୍ତ ।
ମାନଙ୍କ ଠିକଏ ଖୋଳ ଦେଇଛି ଅନ୍ତର
ନେବେ ବୁଝି ସତ୍ୟାସତ୍ୟ ମୋ ଭାଇ ଭୋଟର ।
ପାଞ୍ଚବର୍ଷ ଲଗି ତୁମ୍ଭେ ମାରୁଛ କୁହାଟ
ପେଟ୍ରୋଲ ପୋଡ଼ି ଦେଶରେ ହେଲ ନବ ଭାଟ ।

ତବ ଲଗ ମୋ ଉଦ୍ୟାନ ହୋଇଲା ଶ୍ରୀହୀନ
ଫୁଲମାଳ ଗୁନ୍ଥାରେ ମୋ ଗଲା କଟି ଦିନ ।
ଲୁଣ୍ଠାଇ ସୁଣ୍ଠାଇ ସବୁ ନେଲ ହେ ଗୋଷାଇ
ଛାଡପାଲେ ଦେଲ ବ୍ୟାଘ୍ରେ ଲୁହକୁ ଗଡ଼ାଇ ।
କହ କହ ହେ ସଦସ୍ୟେ ! ଶ୍ୱେତ ପୂର୍ବ କଥା
ମାଗୁଥିଲ ଯେତେବେଳେ ଶ୍ୱେତ ନୁଆଁଇଣ ମଥା ।
ସେତେବେଳେ ଛମିବାନ୍ତ ଶସ୍ୟର ଓଜନ,
ବ୍ୟାଙ୍କଜମା, କୋଠାବାଡ଼ି, ମଟର, ଯୁବର୍ଣ୍ଣ ।
କି ଥିଲ କି ହେଲ ଶ୍ୱେତ- ମ୍ୟାଜିକ ସ୍ପର୍ଶରେ
ହାଟେ ଖାଇ ଗଡ଼ାଗଡ଼ି ପଡ଼ୁଛ ଦାଣ୍ଡରେ ।
କେ ପାଇଲ ଲକ୍ଷପତି କେହୁ କୋଟିପତି
କେହୁ ଅବା ପରଧୀପେ ଜାଳଦେଲ ବତି ।
କେହୁ ବା ପଶୁଧରମ ପାଳିଲ ନିକର
କଣାବଳା ହୋଇ ମଣ୍ଡ ସେହ୍ନ ସହଧର ।
"ଦଳ ଛୁଡ଼ିଦେଲ ଦେଶ ଛାଡ ହିତ ପାଇଁ
ଏଥର ଦେଶକୁ ସ୍ୱର୍ଗେ ଦେବଟି ଉଠାଇ ।"
ପାଇଛୁ ଜନତା ଏହ୍ୱ ଗୋଟିଏ ବଦ୍ଧିତ
ଗୃଣ ସୁମର ଘୋଷୁଛୁ ତବ ଇତବୃତ୍ତି ।
ମାସିକ ଦୈନିକ ଭତ୍ତା ହେଉଛୁ ନିଅଣ୍ଟ
ଶଳୁତ୍ୱକ ଓଡ଼ିଆର ଦାନା କନା କଷ୍ଟ ।
କ୍ଷମତାବଳେ କେ ନିଜ ନାମ ଉପାଧିରେ
ଦେଲେ ଗଢ଼େ ଅନୁଷ୍ଠାନ ଗୃହୁଁ କୁ ଅାଖିରେ ।

ଗୃହାପାନ ଜୟନ୍ତୀରେ କେ କରେ ପାଳନ
ବର୍ଷାକାଳ ଜଳପର ସରକାରୀ ଧନ ।
ନେଲ, ନେବ କେତେବର୍ଷ ଆଉ ନାଥ ମାର
ରକ୍ଷକ ଭକ୍ଷକ ହେଲେ କେ ଶୁଣେ ଗୁହାର ?
କାହିଁଗଲା ଗାନ୍ଧି କଥା କୁଟୀର ଶିଳ୍ପରେ
ଶକାଶ ହେଉଛି ଏ କି ପ୍ରାସାଦ ଶିଳ୍ପରେ ?
ଦୂରଦୃଷ୍ଟି ନ ଥିଲା କି ଗାନ୍ଧି ମହାତ୍ମାର
ସେଥିକି କୁଟୀର ଶିଳ୍ପ କଲ ପରିହାର ?
ନିଜ ଗାରମାର ପଦ ଥିଲା କରମତ
ଗାନ୍ଧି ନାମ ବିକି ଖାଅ କାହିଁକି ଦୁର୍ମତ ?
ଦରିଦ୍ର ହୁଏ ଦରିଦ୍ର ଧନୀ ହୁଏ ଧନୀ
ଏହି କି ଶିଳ୍ପ ଯୋଜନା ଉନ୍ନତ କରଣୀ !
ହେ ସଦସ୍ୟେ ! ଗଲ ଇଲ୍ଲି କେତେ ବନପୁରେ
ନ ଦେଖିଲ କାର୍ଯ୍ୟ ସିନା ଶୁଣିଛି କାନରେ ।
"ହାତୀ, ଘୋଡ଼ା, ଘିଅ, ମହୁ, ସ୍କୁଲ, ପାନ୍ଥାଗାର,
ବାଟ, ଘାଟ, ନଳକୂପ, ଟାଇଲର ଘର
ପୋଖରୀ ଖୋଳାଇ ଆଗ କରିବ ଉନ୍ନତ
ଟେକିବ ଦରିଦ୍ର ମୁଣ୍ଡ ମୁହଁ ଫୁନାଛତ ।"
କେ କହେ "ଖଜଣା ବୃଦ୍ଧି ନିଷ୍ଟୟ ରେକିବ"
କେ ଉଚ୍ଚଲୀ "ଛିନ୍ନମସ୍ତା ମାତା ଉଦ୍ଧାରିବ" ।
"ଗଲେ ଜରିବୁ ସୁଲଭ ଆମ୍ଭେ ଦାନା ଜନା
ବାହାରୁ ଆସିଛୁ ଦେଖ କେତେ କି ଯୋଜନା ।"

ଦେଖୁଅଛୁ ସବୁ ମିଛ ସବୁହିଁ ଫିସାଦ
ଭୋଟ ନେବାପାଇଁ ସବୁ ପାତଥିଲ ଫାନ୍ଦ ।
ଯହିଁ ଦେଖେ ତହିଁ କର ଖାଲି 'କର' 'କର'
କାହିଁ ପ୍ରତ୍ୟକ୍ଷରେ କାହିଁ ଦେଇ ପରୋକ୍ଷର ।
ନିମକେ ନଥିବା କର ଖୋଜିଲେ ଦେଶରେ
ମିଳିପାରେ ଦୁଇ ତିନି ବହୁ ଆୟାସରେ ।
'କର ଅବା ମର' କଥା ଗାନ୍ଧି ପ୍ରବଚନ
'କର ଦେଇ ଦେଇ ମର' ଜନ ଅର୍ଥଜ୍ଞାନ ।
ଜଣାଯାଏ ଶେଷେ ନିଜ ମାତୃଭାଷା ଛାଡ଼ି
ଶିକ୍ଷା ସାଂସ୍କୃତ ନିଜତ୍ୱ ଦେବଟି ଉଜାଡ଼ି ।
କର ବା ନକର ତୁମ୍ଭେ ଥରେହିଁ ବିଚାର
ତବ ଦୋଷେ ଜନତାର ବୁକେ ଲୁହଧାର ।
ଅପରର ଦୋଷ ଛିଦ୍ର ଖୋଜୁଛ କେବଳ
କେଉଁଠାରେ ଦେଖାଇଛ ଦଳ ଆତ୍ମବଳ ?
ଇସ୍ତଫା ଦେବାକୁ କିଏ କରୁଥିଲା ମନା
ନଥିଲା କି ହୃଦେ ତବ ଜାତୀୟ ଚେତନା ?
ଖାଲି କଷ୍ଟ, ତ୍ୟାଗ କେବେ ଦେଖାଉଛ ପ୍ରୌଢ଼ି
ଧନ କ୍ଷମତା ବିବେକ ଦେଇଛନ୍ତି କି ମୋଡ଼ି ?
କିରେ ବାବା ! ଦେଶପାଇଁ ଯେ କାମ କରିବ
ଜନ ଜନାର୍ଦ୍ଦନ ଭାବ ହୃଦେ ପୂଜୁଥିବ ।
ମୋର ଦେଶ ମାତା ପାଇଁ ଦେବ ନିଷ୍ଠେ ପ୍ରାଣ
ଦଧିଚୀ ଦାୟାଦ ମୁହିଁ କରିବ ପ୍ରମାଣ ।

ତେବେ ଯାଇଁ ଏ ଦେଶର ପ୍ରତିନିଧି ହେବ
ଭବିଷ୍ୟତ ବଂଶଧରେ ପୁଷ୍ପାଞ୍ଜଳି ନେବ ।
ତବ ପାଖେ ମୋ ନିଜର ଅଛି ସଦା ଦାବି
ଆନ୍ତରିକେ ଥରେ ଦେଖ କଥା ଯାଅ ଭାବି ।
ବୀର-ସ୍ୱର୍ଣ୍ଣପ୍ରସୂ ମୋର ଜନନୀ ଭାରତ
ପ୍ରତି ଶିରା-ପ୍ରଶିରାରେ ବହେ ତା ରକତ ।
ନିଜଠାରୁ ଦେଶ କେବେ ନୁହେଁ ଭିନ୍ନାଭିନ୍ନ
ପରିବାର ନିଜ ସହ ଦେଶହିଁ ଅଭିନ୍ନ ।
ଦେଶ ଜାତି ମଙ୍ଗଳରେ ଲଗାଇଲେ ଚିନ୍ତା
ବ୍ୟକ୍ତିଗତ ଦୁଃଖ ଗ୍ଲାନି ହୋଇବ ଅଚିନ୍ତା ।
ସଂସାର ଦିଶିବ ନିଜ ଆତ୍ମୀୟ ସମାନ
ହୃଦୟରୁ ନିଭିଯିବ ମାନ ଅପମାନ ।
ଦୃଷ୍ଟି ମାତେ ଦିଶୁଥିବ ନିଜ ଭାଇ ମୁଖ
ଭାରତ ଜନନୀ ତେବେ ପାଶୋରିବ ଦୁଃଖ ।
ଶଯ୍ୟାତ୍ୟାଗ ପୂର୍ବୁ ଥରେ ମାତା ପଦେ ନମି
ସଂସାର ଜଞ୍ଜାଳପଥେ ହେଉଥାଅ ଭ୍ରମି ।
ଜୀବନେ ପାଳିଲେ ଏହି ଆଦର୍ଶ ମହତ
ଭବିଷ୍ୟତେ ଗଢ଼ି ହେବ ସୁନାର ଭାରତ ।
ଜରୁରୀ ପରିସ୍ଥିତିରେ ଦେଶେ ଲଗେ ନିଆଁ
ଦିଲ୍ଲୀରୁ ଦୌଲତାବାଦ କେ ମାରୁଛି ଡିଆଁ ।
କଥା କାର୍ଯ୍ୟେ ନାହିଁ ମେଳ ସବୁ ଫୁସ୍‌ଫାସ୍
ମାସକ ଶୁଭୁଛି ଖାଲି ସାବାସ୍ ସାବାସ୍ ।

ନୂଆ ନୂଆ ଆଇନରେ ଦେଶ ତନାଘନା
ସତେ ଯେପରି ବନ୍ଧ୍ୟା ସ୍ତ୍ରୀର ପ୍ରସବ ବେଦନା ।
ଗୋଟି ଗୋଟି କରି କଥା ହୃଦରେ ବିଗୁର
'ନ ଧରେ ନ ଡରେ'ଭାବେ ଗୃଳନ୍ତି ସର୍କାର ।
ପଞ୍ଚଶୀଳମୀତ କର୍ତ୍ତା ଭାରତ ସର୍କାର
ରାଜନୀତି ଭୁଲିଯାଇ ହୋଇଲେ ଉଦାର ।
ଭାରତ ଦର୍ଶନେ ଆସି ଗୃଓ ଏନ୍ ଲାଇ
ଉଚ୍ଚେ ସ୍ୱର ଗଲା ତୋଳି ହିନ୍ଦ୍-ଚୀନ୍ ଭାଇ ।
ଉଦାର ନୀତି ରକ୍ଷଣେ ଆମ୍ଭ ସରକାର
ଭଲତ ଚୀନର ବୋଲି କଲେ ସ୍ୱୀକାର ।
ବିଶ୍ୱାସରେ ଦେଇ ବିଷ ବର୍ବର ଗୃଇନା
'ଆଶ୍ରୟପ୍ରାର୍ଥୀକୁ ଦଣ୍ଡ' କଲା ତନାଘନା ।
ନମାନି କାହାରି କଥା କଲା ଆକ୍ରମଣ
ଭାରତ ପୁଆଙ୍କେ ଗୁଳି କରିଲା ବର୍ଷଣ ।
ମାତା ରକ୍ଷା ପାଇଁ ଯେତେ ଦେଲେ ଆତ୍ମବଳି
ସବାଗ୍ରେ ତାହାଙ୍କ ପଦେ ହେଉ ପୁଷ୍ପାଞ୍ଜଳି ।
ତା'କପଟ ହେତୁ ଦେଶ ପଡ଼ି ବିପଦରେ
ସଙ୍କୋଚରେ ବସିଛନ୍ତି ମାଡ଼ି ନେଫା, ଲଦାଖରେ ।
ଘାଟି ବାନ୍ଧି ଅସ୍ତ୍ର ଶସ୍ତ୍ର ରଖୁଛନ୍ତି ସଜାଡ଼ି
ଶୀତଳ ଯୁଦ୍ଧ କୌଶଳେ ଆସିବାକୁ ମାଡ଼ି ।
ଭୁଟାନ ପ୍ରଧାନମନ୍ତ୍ରୀ ହତ୍ୟାର ପଛରେ
ଦୁର୍ବୃତ୍ତ ଗୃଇନା ହାତ ଅଛି ଅଦୃଶ୍ୟରେ ।

ତଇଳ ଖଣି ଉପରେ ଦୃଷ୍ଟି ଯା' ଲୋଲୁପ
ପାଇଲେ ବଦଳି ଯିବ ଦୁନିଆର ରୂପ ।
ସେଥିପାଇଁ ପାକିସ୍ଥାନେ କରୁଛି ମନ୍ତ୍ରଣା
ତା'ଦେଖି ଭାରତବାସୀ ଭୋଗନ୍ତି ଯନ୍ତ୍ରଣା ।
ଲଗାଉଛି ପାକିସ୍ତାନ ନିତ୍ୟ ହାଣ କାଠ
ପ୍ରଜାଙ୍କୁ ଭଣ୍ଡିବା ପାଇଁ ଧରେ ଏହି ବାଟ ।
ପ୍ରଜା ଅସନ୍ତୋଷ ବହ୍ନି କୁହୁଳୁଛି ଯେବେ
ସେ ଶକ୍ତିକୁ ଏ ଦିଗରେ ମୋଡ଼ି ଦିଏ ତେବେ ।
ଜୀବହତ୍ୟା ଯାହାଙ୍କର ନିତ୍ୟ ଲୀଳା ଖେଳା
ସେ କି କେବେ ବଧ ଲଗି କରିବେଟି ହେଳା ?
ହସ୍ତରେ ଛୁରିକା ଧରି ଉତ୍ସବରେ ମାତି
ଦଳବାନ୍ଧି ଆଗପଛୁ ପକାଇଲେ କାଟି ।
ଭୋଜନ ଶୟନେ କେନ୍ଦ୍ର କଲ ଆକ୍ରମଣ
ମାତୃବକ୍ଷୁ ଶିଶୁ ଟାଣି କରିଲ ଛେଦନ ।
ରମଣୀର ଅତ୍ୟାଚାର କହି ନ ଯୋଗାଇ
ବାଳିକା ପଣ୍ୟରେ କାହିଁ ଦେଉଛନ୍ତି ପଠାଇ ।
ଏଥିପାଇଁ ଭାରତ ବି ନୁହେଁ ସୁନାପିଲା
ନିଜ ଗୃହ ରକ୍ଷଣେ ସେ କରିଅଛି ଢିଲା ।
ମୋଗଲ ଲୁଣ୍ଠନ ସହ ବର୍ଗୀ ଅତ୍ୟାଚାର
ଇଂରେଜ ବଣିକଦଳ ତୋପ କାରବାର ।
ଭୋଗୀ ସହି ହୋଇଥିଲା ଦେଶ ଛାରଖାର
ଆଶା ଥିଲା ସ୍ୱାଧୀନରେ ଦୁଃଖ ହେବ ପାର ।

ମାନ ହତେ ବପଶାତ ଖେଳିଲ ଭାରତ
ବଳଚଳ ସନ୍ଧନ କଲ ଦେଖି ପୁବ ରକ୍ତ ।
ରକ୍ତନଦୀ ଭାରତେ ଯେ ଇଚଲ ପ୍ଲାବନ
ସେ ମୂର୍ଖ ପାଷଣ୍ଡ ନଷ୍ଟେ କାରକ ସନ୍ତାନ ।
ଭୁଜଙ୍ଗ-ଚ୍ଚୁନ୍ଦ୍ରା ନ୍ୟାୟ ହୋଇଛି କାଶ୍ମୀର
ସୀମାନ୍ତ ଅଚ୍ଛନ୍ତ ଜଗି ଭାରତର ବୀର ।
କୋଟି କୋଟି ଟଙ୍କା ଖର୍ଚ୍ଚ କଲୁ ଜନପ୍ରତେ
ଗରିବ ପ୍ରଜା କର କ ଯିବ ଅକାରଣେ ?
ବେଲକୁବେଲ ଜଟିଳ କାଶ୍ମୀର ସମସ୍ୟା
ଜାତିସଂଘେ ବାଡ଼ ଖାଲି ହେଲୁ ଲୋକହସା ।
ପାକସ୍ଥାନ ଗୃଇନାର ହେଉଛି ମିଳନ
ଗୁପ୍ତେ ଅସ୍ତ୍ର ଶସ୍ତ୍ର ଅର୍ଥ କେ କରୁଛି ଦାନ ?
ଦେଖିଲେ ଆମ୍ଭଙ୍କୁ ଯେଣୁ କହନ୍ତି ଆମ୍ଭର
ତାଙ୍କ ପାଟେ ସେହ୍ନପର ଗୋଷ୍ଠୀକ ନାଗର ।
ପାକସ୍ଥାନ ଭାରତର ହୋଇଲେ କଳହ
ତାହାଙ୍କ ଉଦ୍ଦେଶ୍ୟ ସିଦ୍ଧ ହୋଇବ ନିଶ୍ଚୟ ।
ମୁଷ୍ଟିମେୟ ବ୍ରିଟିଶର ବୁଦ୍ଧି ବଚକ୍ଷଣ
ସ୍ୱାଧୀନତା ଭଗ ବାଣ୍ଟି କରିଗଲେ ଦାନ ।
ଯିବାପୂର୍ବୁ କଳମଞ୍ଜି ଭେଦଭାବ ବିଷ
ଖେଳିଦେଇ ଗଲ ଗୃଲ ବ୍ରିଟିଶ ପଳସ ।
ଭାରତୁ ତଡ଼ିଲ ମୋତେ ଯେଉଁ ଶକ୍ତି ଜାଗି
ହେଉ କ୍ଷୟ ସେହୁ ଶକ୍ତି ନିଜ ମଧ୍ୟେ ଲଗି ।

ଭଲ ଭେଲ ନିରୀକ୍ଷଣ କରୁଛୁ ଭିତରେ
ନ କର କଳହ ବୋଲି କହେ ପରସ୍ପରେ ।
ନ ହୁଅ ହେ ବନ୍ଧୁ ! ଭୀତ ଆମ୍ଭେ ଅଛୁ ରହି
ଯେ ଲଗିବ ତୁମ୍ଭ ସଙ୍ଗେ ତାକୁ ଦେବୁ ଦହି ।
ଦେଖନ୍ତି ସୁକ୍ରୁଟ ବସି ଅନ୍ୟାନ୍ୟ ଶକତ
ବାଜ ପ୍ରାପ୍ୟ ଝାଂପିବାକୁ ଠାକ ରହିଛନ୍ତି ।
ଇତିହାସ ମୂକସାକ୍ଷୀ ରହିଛି ବର୍ଣ୍ଣିର
ପଢ଼ିଲେ ଦେବ କହି ସବୁ ସ୍ୱଜଗର ।
ଏହି ସବୁ କଥା ମନେ କରିଣ ବିଚାର
ପାଳ ଭାରତ ଭୂଖଣ୍ଡ ସ୍ୱାଧୀନ ସର୍କାର ।
ରାଜନୀତି ନୁହେଁ କିଛି ପିଲା ଖେଳ ଘର
ସାମାନ୍ୟ ତ୍ରୁଟିରେ ଦେଶ ହୁଏ ଛାରଖାର ।
ସାମ, ଦାନ, ଦଣ୍ଡ, ଭେଦ, ସୁଦୃଢ଼ ସୋପାନ
ପ୍ରୟୋଗ କୌଶଳେ ଚଳେ ଶାସନ ବିଧାନ ।
ରାଜନୀତି କୂଟନୀତି ଅତି ଚମତ୍କାର
ହେଲେ ଯାଇଁ ଦେଶେ ଗଢ଼େ ସୁସ୍ଥ ସରକାର ।
ତଥାପି କହୁଛି ଆମ୍ଭେ ଭାଇ ମୋ ଦେଶର
ନିଶ୍ଚୟ ଜବାବ ଦେବ ଠିକଣା ବେଳର ।
ବତ୍ରିଶ ଗୁଡ଼ିଲ ହଦଣି ଯେ ଜାତି ସଂହତି
ପ୍ରତି ରକ୍ତ-କଣିକାରେ ଅଛି ସେହି ଶକ୍ତି ।
ଦେଖାଇଣ ଥିଲି ମାନ ଥରେ ଦୁଇନାକୁ
ସେ ଶକ୍ତି ଶତ୍ରୁଙ୍କୁ ଦଳି ରଖିବ ମାଆକୁ ।

ଆଜ୍ଞ ସିନା ସରକାର କରେ ସହଯୋଗ
ଅସହଯୋଗ ମାଧ୍ୟମେ ସ୍ୱାଧୀନତା ଭୋଗ ।
ଭୋଗସର୍ବସ୍ୱ ଯୋଗୁଁହିଁ ପଛୁଇଛି ଯାହା
ତ୍ୟାଗମନ୍ତ୍ରେ ଖୋଜୁଥିବ ଶତ୍ରୁ ନିଜ ରାହା ।
ନିଜ ଦୋଷ ନିଜେ କେବେ ନ ଦେଖୁଛୁ ବାରେ
ପର ମୁଣ୍ଡେ ଅଠା ବୋଳ ସାଆନ୍ତ ବଗୃରେ ।
ମୂଖର ଆହାର ନେଇ ସାଜ ଦାତା-କର୍ଣ୍ଣ
ଓଡ଼ିଆ ସ୍ୱର ଲହରୀ ହା-ଅନ୍ନ ହା-ଅନ୍ନ ।
ନ ଚହଲିଲ ନ ଜାଗିଲ ଓଡ଼ିଆକୁ ଥରେ
କହୁଛି ଯା' ଦେଖିଅଛି ନିଜେ ସ୍ୱ-ନୟନରେ ।
ପୁରୁଷାଙ୍ଗକୁ କୌପୀନ ଲୁଗୃଇ ପାରୁଛି
ରମଣୀର ବକ୍ଷସ୍ଥଳ ଫୁଙ୍ଗୁଳା ହୋଇଛି ।
ପ୍ରବାଳ କରୁଛି ହୃଦ- ଦେଶ ଅଧିକାର
କାଚ କଡ଼କଣ୍ଠୀ କା'ର ମଣିମୟ ହାର ।
ଶରୀର ଚମଡ଼ା ରୁକ୍ଷ ଦଶେ କି ଶୋଭନ
ତେଲାଭାବେ ବନ୍ଧା ନାହିଁ ଜୁଡ଼ା ଆଜୀବନ ।
ଫୁରୁଫୁରୁ ଉଡ଼ ଧରେ ପିଙ୍ଗଳର ବର୍ଣ୍ଣ
ଅର୍ଦ୍ଧ ଗଳିତ ରବରେ ଯେ ଶୋଭୁଅଛି କର୍ଣ୍ଣ ।
ବନ୍ଧୁ କୃଷ୍ଣ ରମାନନ୍ଦୀ କପଟ ମୁଖରେ
କଷ୍ଟଭୋଗୀ କୁଟାଇଣ ହଟଶିରୀ କରେ ?
ଅସ୍ଥିଚର୍ମ ଦେହ ଶିଶୁ ଗୃହେହିଁ କଳବଳ
ଭବିଷ୍ୟତ ବଂଶଧର ନ ଲଗେ ବିକଳ ?

ନ ଗୃହିଲ ଥରେ ହେଲେ  କରବା, ଚେରେଙ୍ଗା,
ପିଠଲ, ମସିଆ, ମାର,  ମକା, ସୁଆଁ, ଝୁଙ୍ଗା ।
କୁହୁଣ୍ଡି, କାଙ୍ଗଲ, କାଙ୍ଗୁ,  ସଲପ, ମୁଣ୍ଡିଙ୍ଗା,
ବରଡ଼ା, ମାଣ୍ଡିଆ, ଜହ୍ନା,  ଶିଠୀ, ଜୁର୍ଗାକାଙ୍ଗା ।
ଅଦଡ଼, ଅଗ୍ନିଣା, ଚପଣ୍ଡି,  ଝୁଠା, କନ୍ଦମୂଳ,
ଘାଲଆ, ଡମ୍ବିଷ୍ଟି, ବର,  ଶିଆଳୀର ଫଳ ।
ଗୁକୁଣ୍ଡା, ମୁଦାରବାଡ଼,  ମେଣ୍ଡି, ଅଷାଢ଼ୁଆ,
ଢେନୁଳୀ ମଞ୍ଜିର ଗୁଣ୍ଡ,  ଆମ୍ବର ଝାଲୁଆ ।
ନ କାଟିଣ ଜୀବ ବେମ  ସଜ୍ଜିତରେ ପୋଡ଼
ତେଲ, ଲୁଣ, ଲଙ୍କା କଣ୍ଟ  ନ ପାଶବ ଲୋଡ଼ ।
ପନ୍ଦଠୋଲ୍ ହସ୍ତେ ଧଣ  କର ହେ ଭୋଜନ
ଲଦ୍ଧ ତୁମ୍ବା ଦେଇ ମୁଖେ  କର ଜଳପାନ ।
ଚର୍ବ୍ୟ, ଚୋଷ୍ୟ, ଲେହ୍ୟ, ପେପ୍ସ  ଏ ଗୃଶ ପ୍ରକାର
ଆଗ ଗୃହି ପଛେ କର  ଏ ଦେଶ ବଗୃର ।
କଂଗ୍ରେସ, କମ୍ୟୁନିଷ୍ଟ,  ସ୍ୱତନ୍ତ୍ର, ସ୍ୱାଧୀନ,
ସୋସାଲିଷ୍ଟ, ଜନସଂଘ,  ଦଳ ନାମ ଭିନ୍ନ ।
ନିଜ ପେଟ ନିଜ ଦଳ  ଏ କ ଦେଶ ଶତ୍ରୁ
ପରସ୍ପରେ ଦୋଷ ଲଦ  ଜନେ କାଟ ଶତା ।
ଲାଞ୍ଚ ମିଛ ପ୍ରିୟାପ୍ରୀତ  ଗୃଳନ୍ତି କୌଶଳେ
ଭୋଟଖଣ୍ଡ ମାଗିବାକୁ  ଷଡ଼ଯନ୍ତ୍ରବଳେ ।
କହିବ ଜନତା ଆଗେ  ଆମ୍ଭେ ସୁନାପୁଅ
ଅନ୍ୟେ ଭୋଟ ଦେଲେ ତବ  ଝଗୁଥିବ ଲୁହ ।

ଏ ଠକାମି ଏ ଭଣ୍ଡାମି ଆଉ ନ ଚାଲିବ
ମୋ ଦେଶ ମୋ ଜାତି ଆଗ ପଚାରି ବୁଝିବ ।
ନେଇ ନେଇ ନେତା ହେବା ସୁଖ ସ୍ୱପ୍ନ ଛାଡ଼
ଗାନ୍ଧି ଫକୀର ପ୍ରାପ୍ୟକ ସ୍ୱତ୍ତ୍ୱ ନ ମାଡ଼ ।
ତେବେ ଯାଇଁ ଜାତି ପାଶେ ମାଗି ବୁଲ ଭୋଟ
ଫିଙ୍ଗିଦିଅ ପକେଟରୁ ସେ ନମସ୍କ ନୋଟ ।
ନ ଧରନ୍ତୁ ଦୋଷ ମୋର ସୁବଜ୍ଞ ମେମ୍ବର
ଆପଣ ନାହାନ୍ତି ଏଥି ଆଲୋଚ୍ୟ ଭିତର ।
ଜାତି ମାତା ଉଦ୍ଧାର ଯା' ଜୀବନର ବ୍ରତ
ତାଙ୍କ ପଦତଳେ ମୋର ଶତ ଦଣ୍ଡବତ ।
କହିବ ମୋ ଘର ପାଇଁ ଗୋଟେ ପଦ କଥା
ସେଥିପାଇଁ ଆନ କେହି ନ ବହିବେ ବ୍ୟଥା ।
ଜାତି ମାତା ବୁକେ ଛୁରୀ ମାରଣେ ଯେ କ୍ଷମ
ଜହ୍ଲଲୀ ଅଯୋଗ୍ୟ କହି ଦୁଅନ୍ତି ବେଦମ ।
କେ ପିଠିରେ ଥରେ ହାତ ଦେଲେଟି ସାଉଁଳ
ତାହାଙ୍କୁ ଧରଣ ଗର୍ବ କରନ୍ତି ଜହ୍ଲଲୀ ।
କୁମ୍ଭୀର କାନ୍ଦଣା ପ୍ରାୟ କାନ୍ଦନ୍ତି ସଭାରେ
ଆନ ନାମେ ରକ୍ତ ଶୋଷେ ବଡ଼ିଜ ବେଶରେ ।
କ୍ଷମତା ପାଇବା ପାଇଁ ଶେଷ ଯାଏ ମନ
କହୁଥାନ୍ତି ଭସ୍ମ ସେହୁ ସାଧାରଣ ଧନ ।
ନ ଭୁଲିବ କେବେ ତାଙ୍କୁ ମୋ ଓଡ଼ିଆ ଭାଇ
ପଚାରିଲେ 'ନାଆଁ ଖୁଣ୍ଟା' ପାରେ ବନ୍ଧୁ କହି ।

ଉପସ୍ଥିତ ସରକାର — ଶୁଣ ଜାତି ଅଳି
ସଙ୍ଗୀନ ମୂନରେ ଆଉ — ଦିଅ ନାହିଁ ଦଳି ।
ଦେଶ ଜାତି ପାଇଁ ଯଦି — ପାଞ୍ଚୁଛ ମଙ୍ଗଳ
ଦେଖାଅ ଦେଖିବା ଅଛୁ — କେତେ ଆତ୍ମବଳ !
ଛିନ୍ନମସ୍ତା ଜନନୀର — ପୋଛ ଆଖିଲୁହ
ପ୍ରକୃତ ସନ୍ତାନ ରୂପେ — ବନ୍ଦ କର କୋହ ।
ତା'ଦୁଃଖରେ ମୂହ୍ୟମାନ — ଜଗିଅ ସରବେ
ଦେଖୁନାହିଁ କି ଦିଶୁଛି — ଉତ୍କଳର ନଭେ ?
ନଭେମ୍ବର ଆଦ୍ୟ ଉଷା — ଉଣିଶ ଛପନ
ଉତ୍କଳ ଆକାଶେ ଏ କି — ଅଦ୍ଭୁତ କେତନ !
ଶୋଭୁଛି କୃଷ୍ଣଚଉଳ — ଦେଖ ପ୍ରାଣଭରି
କପରି କାରୁଣ୍ୟ କାନ୍ଦ- — ଯାଏ ବିଭାବରୀ ।
ଆସନ୍ତ୍ର ଅରୁଣ ଆଜ — ଯୋଚ କୃଷ୍ଣବାରୁ
ଝରୁଛି ଲୋତକ ଝରି — ଅନୁରୁ ଚକ୍ଷୁରୁ ।
ସାଗର, ପର୍ବତ, ତରୁ, — ଲତା, ସାନୁମାନ,
କାନ୍ତାର, ପ୍ରାନ୍ତର, ବନ, — ବିଲ, ଶମଶାନ,
ମନ୍ଦିର, ମସ୍‌ଜିଦ, ଗୀର୍ଜା, — କୁଟୀର, ପ୍ରାସାଦ,
ଗ୍ରାସିଅଛି କୃଷ୍ଣଛାୟା — ସରବେ ବିଷାଦ ।
ସଖେଦେ ଦେଖନ୍ତି ସ୍ୱର୍ଗେ — ଶହୀଦସମୂହ
ଉତ୍କଳୀ ଉତ୍କଳ କୋଳୁଁ — ନେଉଛୁ ବିଦାୟ ।
ଗୋପବନ୍ଧୁ, ଗୋଦାବରୀ, — ମଧୁ, ବେଙ୍ଗପାଣି
ସ୍ୱର୍ଗେ ଆଜି ଅନଶନ — ଆରମ୍ଭ କଲେଣି ।

ଛିନ୍ନମସ୍ତା ଜନନୀର ବିକଳ କ୍ରନ୍ଦନ
ଅବନୀ ଫଟାଇ ପ୍ରାଣେ ଦେଉଛି ସ୍ପନ୍ଦନ ।
ହେ ଓଡ଼ିଆ ବୀରମୂଳ ! ନିମିଷେ ବସୁର
ଅଜଠାରୁ ମାତା ହୃଦେ ପଡ଼େ ଭଡ଼ଗାର ।
ମୋ ଜନନୀ ନ ପିନ୍ଧୁଛି 'ସୁରଙ୍ଗୀ' ବସନ
'ମଞ୍ଜୁଷା' ଫେଇ ନ ପିନ୍ଧେ ଆଉ ଆଭରଣ ।
'ଝିକାଲି' ମଥାରେ ତା'ର ନ ପାଉଛି ଶୋଭା
'ତରଳ' ନୟନେ ସେହୁ ନ ବାନ୍ଧୁଛି ଗଭା ।
'ଫୁଲଝର' ଫୁଲମାଳ ଜୁଡ଼ାରେ ନ ବାନ୍ଧେ
'ବନ୍ଦୀ-ନୂଆଗଡ଼' ଦେନ ନ ଗୁନ୍ଥୁଛି ପାଦେ ।
'ଷଢ଼େଇକଲା' ନ ଥିବାରୁ ନ ଦେନେ କଙ୍କୁଳ
ଲେଡକଣ ଝର ।
'ଖରସୁଆଁ' ଖରସ୍ରୋତେ ନ ଶୋଭବ କଣ୍ଠୀ
ସ୍ମୃତି ପରବେ ଆଜ ଯାଇଅଛି ହଟି ।
'ବସ୍ତ୍ର'ରୂପୀ ପଞ୍ଚବସ୍ତ୍ର କରୁନାହିଁ ସ୍ନାନ
ଗଙ୍ଗା ଗୋଦାବରୀ ତୀର୍ଥେ ମୁଖ ହେଲା ମ୍ଳାନ ।
ବେକୁଁ ବେଳ ଜନନୀର ଓହ୍ଲାଇ ବକଳେ
ଛଟପଟ ହେଉଅଛି ହୃଦ ନ ତରଳେ ?
ମାତୃ ଦୁଃଖେ ସନ୍ତାନର ଅଛି ଅବନୀରେ
ହା ପୁତ୍ରେ ଓଡ଼ିଆ ! ତୁମ୍ଭ ନୁହେ ଧମନୀରେ ?
ତପ୍ତରକ୍ତ ପ୍ରବାହିତ କାଞ୍ଚି ଓ କାବେରୀ
ଶୁଣିଥିବୁ ଜାଉ, ବାଳି,
ଗଙ୍ଗା ସଙ୍ଗମେ ମୁକୁନ୍ଦ ଘାଟେ ଶୁଭେ ଭେରୀ ।

ତାଙ୍କର ଦାୟାଦ ଆମେ ପଡୁନାହୁଁ ମନେ
ପୂର୍ବ ପୁରୁଷଙ୍କୁ ସ୍ୱର୍ଗେ ରଖ ଅନଶନେ ?
ଦେଶ ଜାତି ହିତ ପାଇଁ ଜନ୍ମ ସବୁ ତବ
ଶତସିଂହ ପରାକ୍ରମୀ ପାଅ ପରାଭବ !
ନୁହେ ଭୀରୁ କାପୁରୁଷ ଓଡ଼ିଆ ସନ୍ତାନ
ଯୁଗେ ଯୁଗେ ରଖିଅଛୁ ମାତାର ସମ୍ମାନ ।
ଏକ ମନେ ଏକ ପ୍ରାଣେ ଓଡ଼ିଆ ସନ୍ତାନ
ଆବାଳବୃଦ୍ଧବନିତା ଦିଅ ହେ ଆହ୍ୱାନ ।
ଜାଗ ଜାଗ ସୁପ୍ତସିଂହ ଜନନୀ ଉଦ୍ଧର
ଏକମାତ୍ର ମନ୍ତ୍ର ହେଉ 'ଜୟମା ଉତ୍କଳ' ।
ଛିନ୍ନମସ୍ତା ମାତା ଆଗ ଲଭିଲେ ଉଦ୍ଧାର
କହିବ ସାରା ଉତ୍କଳ ଏ ମୋ ସରକାର ।
ତାହା ହେଲେ ପ୍ରକୃତରେ ହେବ ପ୍ରତିନିଧି
ଫେରିବ ଏ ଦେଶେ ହିତ ଗଢ଼ିରବ ନିଧି ।
କାମରାଜ ଯୋଜନାକୁ କଲି ନିରୀକ୍ଷଣ
ବାଜୁଛି କର୍ଣ୍ଣରେ ଆସି ସମସ୍ତ ଭାଷଣ ।
ଗାନ୍ଧୀନୀତି ଗାନ୍ଧୀ କଥା ନ ମାନନ୍ତି ଯେହୁ
କାମରାଜ ଯୋଜନାକୁ ମାନିବେକି ସେହୁ ?
ଚିରବାସେ ଯେଉଁପରି ପକାଯାଏ ତାଳି
ସେହିପରି ଥାଥା ମାମା ରାଜ୍ୟ ଦେବେ ପାଳି,
ମହାକାଳ ଫଳପରି ଭିତର ବାହାର
ନିରେଖି ଦେଖିଲେ ଦିଶେ ଆମ୍ଭ ସରକାର ।

ସେଥିଲି ଷୋଠରେ ଆଜ କହେ ଚେତାବନୀ
ଦେଉଛନ୍ତି କେତୋଟି ମାନ ପ୍ରସ୍ତାବ ବଖାଣି ।
ରାଷ୍ଟ୍ରପତିଙ୍କ ଶାସନ ଦେଶେ ହେଉ ଜାରି
ସଦସ୍ୟଙ୍କ ଅଧିକାର ଯାଉ ହେ ବାହାରି ।
ଧାର ଉଧାର କରଜ ସାହାଯ୍ୟ ମାଗଣା
ଯାହା ମିଳୁ ତାହା ଆଣି ଚଳାଅ ଯୋଜନା ।
ଯୋଜନା କାର୍ଯ୍ୟରେ ସଦା ଥିଲେ ସୁନଜର
ସ୍ୱାଧୀନ ଭାରତ ଭାଗ୍ୟ ଗଢ଼ିବ ସୁନ୍ଦର ।
ସମାଜବାଦ ନିୟମ ହେଲେ ପ୍ରଚଳନ
ରଖି ନ ପାରିବେ କେହୁ ଉଦବୃତ୍ତ ଧନ ।
ବ୍ୟବସାୟୀ ପୁଞ୍ଜିପତି ଯେତେ ଛନ୍ତି ଦେଶେ
କରଜ ତାଙ୍କର ଧନେ ସୁଝିହେବ ଶେଷେ ।
ଦ୍ୱିତୀୟେ ହୁଅନ୍ତୁ ବନ୍ଦୀ ଯେତେ ମନ୍ତ୍ରୀଗଣ
ଦୋଷ ଦୁର୍ନୀତି ତାଙ୍କର ହେଉ ଅନ୍ୱେଷଣ ।
ପୂର୍ବାପର ଆୟବ୍ୟୟ ଦାଖଲ କରିଲେ
ବର୍ତ୍ତିର ଛୁଡ଼ିବ ତାଙ୍କୁ ନିର୍ଦ୍ଦୋଷ ଦେଖିଲେ ।
ଦଣ୍ଡଦୋଢ଼ା ନୀତି ଆଉ ନକଲେ ପ୍ରୟୋଗ
ତେବେ ଯାଇଁ ସମାଜରୁ ଘୁଞ୍ଚିବ ରୋଗ ।
ସ୍ୱାଧୀନତାଠାରୁ ଯେତେ ମନ୍ତ୍ରୀ, ଉପମନ୍ତ୍ରୀ
ପ୍ରତିନିଧି ଲଗି ସେହୁ ନ ହୋଇବେ ପ୍ରାର୍ଥୀ ।
ଆଦିବାସୀ ଅନୁନ୍ନତ ଆଦି ହରିଜନ
ସଂଖ୍ୟାଲଘୁ ଜାତି ଧର୍ମେ ସରବେ ସମାନ ।

ଉଚ୍ଚଶିକ୍ଷା ଉପାଧିରେ ନ ଭୂଷିତ ଯିଏ
ପ୍ରତିନିଧି ଲାଗି ପ୍ରାର୍ଥୀ ନହୋଇବେ ସିଏ ।
ନିର୍ବାଚନ ଅର୍ଡ଼ିନାନ୍‌ସେ କରିଲେ ଘୋଷଣା
ଘୁଞ୍ଚିଯିବ ଜନତାର ଦାରିଦ୍ର୍ୟ ଯନ୍ତ୍ରଣା ।
ଭାଙ୍ଗିଯାଉ ଦଳଗତ ନିର୍ବାଚନ ବିଧି
ଦଳମୁକ୍ତ ଦୋଷମୁକ୍ତ ହେଉ ପ୍ରତିନିଧି ।
ବାହାରନ୍ତୁ ଏ ଦେଶରୁ ଶନ୍ତ୍ରାଶୀଳ ବର୍ଗ
ଧରିବେ ଶାସନ ଡୋରି ଅଛନ୍ତି ଅଭଙ୍ଗ ।
ଭାଙ୍ଗିଗଲେ ଦଳଗତ ପରମ୍ପରା ବିଧି
ତାହାହେଲେ ସ୍ୱାଧୀନତା ଲକ୍ଷ୍ୟ ହେବ ସିଦ୍ଧି ।
ପୁରୁଣା ନୀତି ନିୟମ ନିରପେକ୍ଷ ରାସ୍ତା
ଉଚ୍ଚାରିଲେ ନବଶକ୍ତି ଧରୁ ନୂଆ ବାଟ ।
ଦେଶ ଜାତି ହିତେ ଯାହା ହୋଇବ ମଙ୍ଗଳ
ଖଟାଇ ସମସ୍ତ ଶକ୍ତି ଦେବେ ଆତ୍ମବଳ ।
ଯେତେକ ସମସ୍ୟା ଅଛି ଯିବଟି ଉଭାଇ
ପରସ୍ପରେ କୋଳାକୋଳି ହେବେ ଭାଇ ଭାଇ ।
ଆନ୍ତରିକ ନିୟମରେ ପାଳିଲେ ଏ କଥା
ଭାରତର ଦୁଃଖ ଅମା ଘୁଞ୍ଚିବ ସର୍ବଥା ।
ଏ ନୀତିରେ ପାକିସ୍ତାନ ଭାରତ ସହିତ
ମିଳିବା ଲାଗି ଉଦ୍ୟମ କରିବ ନିଶ୍ଚିତ ।
ସମସ୍ତ ଭାଗ ବିଦ୍ୱେଷ ତା'ର ଘୁଞ୍ଚିଯିବ
ଅଖଣ୍ଡ ଭାରତ ଧ୍ୱଜ ସେ ନିଜେ ତୋଳିବ ।

ଆକୁମାରୀ-ହିମାଚଳ ଗୋଟିଏ ଭାରତ
ସମସ୍ତ ସନ୍ତାନ ଦେହେ ବହେ ମାତା ରକ୍ତ ।
ବଡ଼ ଭାଇ ଭଲ ମନ୍ଦ ସହିବାକୁ ବାଧ୍ୟ
ସାନଭାଇ ବେଳେବେଳେ ହେଲେ ବି ଅବାଧ୍ୟ ।
ନିଜ ସ୍ୱାର୍ଥ ଛାଡ଼ି ବଡ଼ ଦେଖିଲେ ଅନ୍ୟକୁ
ପରସ୍ପର ସ୍ନେହେ ସ୍ୱର୍ଗ ଓହ୍ଲାଏ ମର୍ତ୍ତ୍ୟକୁ ।
ସେହିପରି ଭାରତର ସହ ପାକିସ୍ଥାନ
ବିବାଦ ମନକୁ ମନ ହେବ ସମାଧାନ ।
କାହା ଦୋଷ କେବେହେଲେ କେହି ନ ଧରିବେ
ଶରଣାର୍ଥୀ ନିଜ ଘର ଗୁଏଁ ଆବୋରିବେ ।
ପରସ୍ପରେ ବୁଝାମଣା ନ ଉଠିବ ଶବ୍ଦ
ଭଲ ଭେଲ ଧରାପଡ଼ି ହୋଇବେ ସବଦ ।
ପର ଆଉ କାଠି ନାହିଁ କରିବେ କାହାକୁ
ଲେଉଟିବେ ମନଦୁଃଖେ ଧରି ସେ ରାହାକୁ ।
ମନ୍ଦିର, ମସ୍ଜିଦ, ଗୀର୍ଜା, ଯବନ, କାଫେର,
ହିନ୍ଦୀ, ଉର୍ଦ୍ଦୁ ଭାଷା ଧରି ଭୋଗିଗଲୁ ଢେର ।
ଆଜକାଲି ସେହିପରି ରାଜନୀତି ଦଳ
ପୂର୍ବେ ଧର୍ମ ନାମେ ସେହୁ ସୃଷ୍ଟି ଥିଲେ ବଳ ।
ପରେ ଗୋଡ଼ାଣିଆ ନୀତି କରିବାର ପାଇଁ
ଧର୍ମଧ୍ୱଜୀମାନେ ତାହା ଅଛନ୍ତି ବଢାଇ ।
ମାନବ ବଂଶେ ରାକ୍ଷସ, ଭଲ୍ଲୁକ, ମର୍କଟ,
ଯେ କହେ ସେହୁ ହୋଇଛୁ ପୁରାଣରେ ଶ୍ରେଷ୍ଠ !

ତା'ପୂଜା ଲାଗି ମନ୍ଦିର — ଶହ ଶହ ମଠ
ଲୀଳାଛଳେ ଗ୍ରାସିବାକୁ — ପଡ଼ିଅଛି ପଟ ।
ଖଞ୍ଜିଣ କୌଶଳ କେତେ — କରେ ଧର୍ମାନ୍ତର
ଧର୍ମବ୍ରାତଜ୍ୟ ଦଳ ଲାଗି — ଗ୍ରାସୁଛି ଅପର ।
ମାନବ ମାନବେ ପୂଜି — ତୁଚ୍ଛ ଓ ତାଚ୍ଛଲ୍ୟ
କରାଏ ଶିଖାଏ ଯେଣୁ — ତାକୁ ପୂଜାକର !
ପୂର୍ବକାଳେ ସେହିପରି — ଅତି ବିଚକ୍ଷଣ
ନବଧର୍ମ କରି ସୃଷ୍ଟି — କରାଏ ପାଳନ ।
ନ ଭେଦିଲ ଏତେ ଦିନେ — ତା' ଦୁରଭିସନ୍ଧି
ସେଥିପାଇଁ ଆଜି ସିନା — ମରୁ କାନ୍ଦି କାନ୍ଦି ।
ପ୍ରାଚ୍ୟ ପାଶ୍ଚାତ୍ୟ ମତରେ — ସୁଜ୍ଞାନୀ ବିଜ୍ଞାନୀ
ସାକାର ନିରାକାରରେ — କେ ଅଛି ନ ମାନି ?
ଅଛନ୍ତି ନାହାନ୍ତି ହେଲେ — ହେଥି କେଉଁ ଦୋଷ
ଏଥିପାଇଁ ପରସ୍ପରେ — ବହୁ ବୃଥା ଦ୍ୱେଷ ।
ଯେହେତୁ କହେ ଜମ୍ବୁଦ୍ୱୀପେ — ଏକ ମାତ୍ର ହରି ।
ଭୂଭାରହରଣେ ନିଜେ — ରୂପେ ଅବତରି
ଅନ୍ୟମାନେ ସତେ ଯେହେତୁ — ମାନବେ ଇତର
ଏହି କୂପମଣ୍ଡୂକଙ୍କ — ଦୃଷ୍ଟିହିଁ ତାଙ୍କର ।
ମାନବ ନ ଚିହ୍ନି ପାରେ — ଯେଉଁ ଧର୍ମଗ୍ରନ୍ଥ
ପରସ୍ପରେ ଘୃଣା ଦଳ — ଗୋଷ୍ଠୀଭେଦେ ରତ ?
ତ୍ରିପିଟକ, ବାଇବେଲ, — ଶରିଫ କୋରାନ,
ଅପୌରୁଷେୟ ବେଦରେ — ଏକା ସମାଧାନ ।

ନାହିଁ ତହିଁ ଜୀବ ହତ୍ୟା ଘୃଣା ବି ଅପରେ
ଏଥିପାଇଁ ଭେଦାଭେଦ କିମ୍ପା ପରସ୍ପରେ ?
ଅସ୍ତ୍ର, ଜବ ପୂଜ୍ର 'ଛେଦ' ପକାଅ ବେକରେ
ଆଲ୍ଲାନାମ ଧରି 'ଜବ' କରୁଛ କଣ୍ଠରେ ।
କାର ପାପ କାର ପୁଣ୍ୟ ମାପ ଅହିଂସାରେ
ଧର୍ମଶାସ୍ତ୍ର ନୀତି ଆଜି ଗୃହଳଛି ସଂସାରେ ।
ନିଜ ଦଳ ବୃଦ୍ଧି ପାଇଁ ଉପାୟ ବିଭିନ୍ନ
ଧର୍ମ ନାମେ ଠକିବାକୁ ମତ ଭିନ୍ନ ଭିନ୍ନ ।
ଆଦି ଅନ୍ତ ସୃଷ୍ଟି ତତ୍ତ୍ୱ ହେବ ଉନ୍ମୋଚନ
ଯେଥିକ ସିଦ୍ଧ-ସାଧକ କଲେ ପ୍ରାଣଦାନ ।
ରହିଛି ନିଗୂଢ଼ ତତ୍ତ୍ୱ ଘନ ଅନ୍ଧକାରେ
ପାଇଛି ଯେ କହେ ମିଛେ ବାହାସ୍ଫୋଟ ମାରେ ।
ଲାଗିଛନ୍ତି ଲାଗୁଥାନ୍ତୁ ହେଉ ଉଦ୍‌ଘାଟନ
ସେ ସବୁ କଥାରେ ଆଉ ଦିଅ ନାହିଁ ମନ ।
ସର୍ବଧର୍ମ ସମନ୍ୱୟ କରି ବିଶ୍ୱଧର୍ମ
ଜଗତ ଜନହିତରେ କରିଯାଅ କର୍ମ ।
ଏକମାତ୍ର ସତ୍ୟପଥ କରିଲେ ଆଶ୍ରୟ
ସମସ୍ତ ଦୁଃଖ ଦୁର୍ଦ୍ଦଶା ହେବ ନିରାମୟ ।
ଏହା ଚିନ୍ତି ଏକ ମନେ ସର୍ବେ ହୋଇ ମେଳ
ନବଧର୍ମ ସୃଷ୍ଟି କରି ନୂତନରେ ଖେଳ ।
ଭାଇ ବୋଲି ପରସ୍ପରେ ଦିଅ ହେ ଆହ୍ୱାନ
ଆକୁମାରୀ-ହିମାଚଳ ଭାରତ ସନ୍ତାନ ।

ଉଭୟେ ସ୍ୱଚ୍ଛ ହୃଦୟେ ମିଳିଲେ ଏକତ
ବିଭେଦକ ମତେ ଆସି ହେବେ ଦଣ୍ଡବତ ।
ସେତେବେଳେ କାନ ଧରି ହେବେ ବସାଉଠା
ଗୋଡ଼ଧରି କ୍ଷମାବେଳେ ଥିବ ଦାନ୍ତେ କୁଟା ।
ସେହିମାନେ ହେଉଛନ୍ତି ଦେଶର କଳଙ୍କ
ତାଙ୍କ ଷଡ଼ଯନ୍ତ୍ରବଳେ ଗଣ୍ଡୁଛି ମସ୍ତକ ।
ଅମାଷ୍ଟକାରୀ ଦାନବ ସେହି ଏ ଦେଶରେ
ଉଭୟେ ଏକତ ହେଲେ ଜାଣିବ ପଛରେ ।
ଭାଷା କିପି ଲଗି ଦେଶେ ନ ହେବ କନ୍ଦଳ
ହେକ୍ଟା, କଲେ ଦେଶେ ଆସି ହେଲାଣି ପ୍ରବଳ ।
ରାଜକାର୍ଯ୍ୟ, ଉଚ୍ଚଶିକ୍ଷା ଚାଲୁ ଇଂଲିସରେ
ନ ଲଦ କାହାରି ଭାଷା କାହାରି ଉପରେ ।
ରାଷ୍ଟ୍ରଭାଷା ଦୁହାଇ ଧରି କଲେ ଅନେ୍ୟ ଗ୍ରାସ
ଭବିଷ୍ୟତେ ଭାରତର ହେବ ସର୍ବନାଶ ।
ପାକିସ୍ଥାନ ଭାରତକୁ ଏକ ଦୃଷ୍ଟି ରଖି
କଲେ ସିନା ରାଷ୍ଟ୍ରଭାଷା ହେବ ମନଲାଖି ।
ସାମ୍ପ୍ରଦାୟ୍ୱ ବିଷ ନଷ୍ଟେ ପଡ଼ିବ ମଙ୍ଗଳ
ସେତେବେଳେ ଭାଷା ଢେମ ଉପୁଜିବ କଳି ।
ସେଥିକି ବିଚାରି ବାନ୍ଧ ରଖି ଦୂରଦୃଷ୍ଟି
କାର୍ଯ୍ୟ କଲେ ନ ହୋଇବ ଅଶାନ୍ତିର ସୃଷ୍ଟି ।
ଯାହା ଯୋଗେ ଭାରତର ଉତ୍‌ଥାନ ପତନ
ବୁଝିଛି ଜନତା ଆଜ ନ ଭୁଲୁଛି ମନ ।

ଦେଖି ସବୁ ଜାତି ଜାତି ଜାଣିଛୁ ଅନ୍ତରେ
ଉଦାର ହୃଦ ବନ୍ଧନେ ରହ ପରସ୍ପରେ ।
ଯେ ରହିବ ଯେ ପ୍ରଦେଶେ ତା' ଭାଷା ପଢ଼ିବ
ଅନ୍ୟ ଭାଷା କଲେ ଦାବି ପ୍ରଦେଶ ଗୁଡ଼ିବ ।
ଗୋଟିଏ ନିୟମ ମାତ୍ର ଦେଶରେ ଚଳିବ
ବିଶ୍ୱବିଦ୍ୟାଳୟ ଖାଲି ଉଦାର ହୋଇବ ।
ତାଙ୍କ କଲେଜେ ଦେବ ଶିକ୍ଷା ପ୍ରାଦେଶିକ ଭାଷା
ଇଚ୍ଛାକଲେ ପଢ଼ନ୍ତୁ ବି ବୈଦେଶିକ ଭାଷା ।
ପ୍ରାଇମେରି ଆରମ୍ଭରୁ କଲେଜ ପର୍ଯ୍ୟନ୍ତ
ଅନ୍ୟ ଭାଷା ଶିକ୍ଷା ଦେଇ ନ ହୁଅ ଖଚାନ୍ତ ।
ନିଜ ଜିଦ୍ ରକ୍ଷଣରେ କର ଧନ ଦାନ
ନ ଗଢ଼ ପାରିବେ କାହିଁ କେହୁ ଅନୁଷ୍ଠାନ ।
ମାତୃଭାଷା ମାଧ୍ୟମରେ ଜାତିଦ୍ୱେଷ ମଞ୍ଜି
ନ ବୁଣି ପାରିବେ ଏହି ସୂତ୍ର ଦେଲେ ଖଞ୍ଜି ।
ଜମିଜମା, କୋଠାବାଡ଼ି, କଳ, କାରଖାନା
ଗଢ଼ି ବେପାର କଲେ କେ କରୁନାହିଁ ମନା ।
ଯେଉଁ ଦେଶେ ବସବାସ ହେଉଛି ଦର୍କାର
ସେ ପ୍ରଦେଶ ଭାଷା କିମ୍ପା ହେଉଛି ଅସାର ?
ଗୋଟିଏ ପ୍ରଦେଶ ଲୋକ ଆନ ପ୍ରଦେଶରେ
ହୁଅନ୍ତି ଗଠିତ ନିଜ ଗାରିମା ବଳରେ ।
ସେଥିପାଇଁ ଘଟେ ଯଦି କିଛି ବ୍ୟତିପାତ
କରିବେ ନାହିଁ ସର୍କାର କଡ଼ା ଦୃଷ୍ଟିପାତ ।

ରହିବ ଯେଉଁ ଦେଶରେ    ସେ ଦେଶ ନାଗର
କରିବ ଶିକ୍ଷା ସଂସ୍କୃତ    ଗ୍ରହଣ ସେଠାଙ୍କର ।
ତେବେ ସିନା ପରସ୍ପରେ    ପ୍ରେମ [illegible]
ଅଶାନ୍ତି ଘଟିଲେ ଦେଶେ    ନିଜେ ସୁଧାରିବ ।
ଯେଉଁ ଦେଶ ଯାଇ ପରି    ସେହି ଫଳ ଖାଇ
ଏ ନୀତି ମାନିଲେ ସିନା    ହେବ ଭାଇ ଭାଇ ।
ବଳେ ଅନ୍ୟ ଭାଷା ଲିପି    ଲଦିଲେ ଉପରେ
ଖଣ୍ଡ ଖଣ୍ଡ ହୋଇଯିବ    ଭାରତ ଶେଷରେ ।
ଶେଷେ କେନ୍ଦ୍ର ଜୟଚନ୍ଦ୍ର    ଦେଶରେ ବାହାରି
ପ୍ରତିଶୋଧ ଲାଗି ଶତ୍ରୁ    ଆଣିବ ହକାରି ।
ସେତେବେଳେ ଲେଣ୍ଡଗୁଡ଼    କନ୍ଦୁଣୀରେ ଯାଇ
ବେଳ ଥାଉ ଥାଉ ବନ୍ଧ    ରଖ ହେ ବନ୍ଧାଇ ।
ହୃଦ ଉଦାର ଦେଖିଲେ    ସିନା ପାକିସ୍ଥାନ
ଆମ୍ଭ ସଙ୍ଗେ ସ୍ୱତଃ ଆସି    ଦେବ ଯୋଗଦାନ ।
ନିଜ ନିଜ ମଧ୍ୟେ ଯଦି    ରହିଲେ ଅବିଶ୍ୱାସ
କିଏ ସେ ଆମ୍ଭଙ୍କୁ କିଆଁ    କରିବ ବିଶ୍ୱାସ ।
ଆମ୍ଭେ ଯଦି ଅନ୍ୟ ପ୍ରତି    ନ ବହିବା ଦ୍ୱେଷ
ଆମ୍ଭଙ୍କୁ କାହିଁକି କିଏ    ବହିବ ବିଦ୍ୱେଷ ?
ଦୃଢ଼ଭାବେ ଏହି ନୀତି    କରିଲେ ପାଳନ
ସସାଗରାଧରା କହୁ-    ଥିବ ଧନ୍ୟ ଧନ୍ୟ ।
ପ୍ରକୃତି ଗଢ଼ିଣ ଦେଶ    କରିଅଛି ଏକ
ଭାଙ୍ଗିବା କାହିଁକି ଆମ୍ଭେ    ଏତେ ଅବିବେକ ?

କୌଣସି ଅଶାନ୍ତି ହେତୁ ଫାଟିଲେହେଁ ମନ
ପୁନରାୟ ହେଉଛି ତ ସବୁଠି ମିଳନ ।
ବଚନ ଦୁନିଆ ଏଥି ସମସ୍ତ ସମ୍ଭବ
କେଉଁଠି ଦେଖିଛ କାହିଁ କିଛି ଅସମ୍ଭବ ?
ପାକିସ୍ଥାନ ଭାରତର ନିଷ୍ଠୁର ମିଳନ
କରିବେ ଦିନେ ନା ଦିନେ ସତ୍ୟ ନାରାୟଣ ।
ସର୍ବଦା ରହିଛି ମୋର ଏ ଆତ୍ମବିଶ୍ୱାସ
ଭବିଷ୍ୟତେ ଜାତିଧର୍ମ ସବୁ ହେବ ନାଶ ।
ଆକୁମାରୀ-ହିମାଚଳ ପ୍ରତ୍ୟେକ ସନ୍ତାନ
ଏକ ମାତା ଗର୍ଭୁଁ ଜାତ କରିବେଟି ଜ୍ଞାନ ।
ଉଚ୍ଚ-ନୀଚ ଜାତି-ଧର୍ମ ସବୁ ଭେଦଭାବ
ଯେତେବେଳେ ଭାରତରେ ହୋଇବ ଅଭାବ ।
ସେତେବେଳେ ଗଢ଼ି ହେବ ସୁନାର ଭାରତ
ସ୍ୱାଧୀନତା ବୃକ୍ଷଫଳ ହେବ ହସ୍ତଗତ ।
ଆନନ୍ଦରେ ଆତ୍ମହରା ହେବେ ସୁତାସୁତ
ମଧୁମୟ ହେବ ବିଶ୍ୱ ଭୁଞ୍ଜିବେ ଅମୃତ ।
ଅଶୋକଚକ୍ର କେତନେ ଗୁନ୍ଦ ଫରଫର
'ଭାରତ ମାତାଙ୍କୀ ଜୟ' ଘୋଷିବ ଅମ୍ବର ।

**— ନମୋ ନାରାୟଣାୟ —**

---

ମୁଦ୍ରାକର—ଶ୍ରୀ ଚନ୍ଦ୍ରମଣି ମିଶ୍ର, ନବଜୀବନ ପ୍ରେସ୍,
କଟକ—୨

ଦଶଦିଗ ?  ଦଶଦିଗ ??

ଦଶଦିଗ ???

ପ୍ରଶଂସିତ ସର୍ବଜନ

ପଢ଼ 'ଚିଲିକା-ଦର୍ଶନ'

ମୂଲ୍ୟ [illegible] ପଇସା

